A noted Professor of Cambridge, "Louis Dickenson, in a book he wrote on India, China and Japan' says, "That the contrast in civilisation is not between that of the East and the West, but between that of India and the rest of the world. The civilisation of India is timeless and that the rest of the world is a civilisation of time."

*—Free India, May 13, 51.*

ଅର୍ଥାତ୍ ଲୁଇ ଡିକେନ୍‌ସନ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଜଣେ ପ୍ରସିଦ୍ଧ ଅଧ୍ୟାପକ ଅଟନ୍ତି । "ଭାରତ, ଚୀନ୍ ଓ ଜାପାନ" ନାମକ ଖଣ୍ଡିଏ ବହି ସେ ରଚନା କରିଅଛନ୍ତି । ସେଥିରେ ସେ ଲେଖିଛନ୍ତି—ସଭ୍ୟତାର ତୁଳନା ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ହୋଇପାରେ ନାହିଁ; ବରଂ ଏହି ତୁଳନାରେ ଏକ ପକ୍ଷରେ ରହିବ ଏକା ଭାରତ ଓ ଅନ୍ୟ ପକ୍ଷରେ ରହିବ ପୃଥିବୀର ଅବଶିଷ୍ଟାଂଶ । ଭାରତ ସଭ୍ୟତା କେବେ ଆରମ୍ଭ ହେଲା, କହିହେବ ନାହିଁ । ଏହା ବରଂ ସମୟାତୀତ, ପୃଥିବୀର ଅବଶିଷ୍ଟାଂଶ ସଭ୍ୟତାର କାଳ ନିର୍ଦ୍ଦେଶ କରାଯାଇପାରେ ।

ଏବେ କେତେ ମାସ ତଳେ ହିମାଳୟର ଏକ ଶୃଙ୍ଗ ଉପରକୁ ଉଠିବାକୁ ଏକ ଫରାସୀ ଅଭିଯାନ ଯାଇଥିଲା । ସେମାନେ ଫେରିଆସି କହିଲେ, ୧୭୦୦୦ (ସତର ହଜାର ଫୁଟ ଉପରକୁ ଉଠିଗଲେ ମନୁଷ୍ୟର ଯୌନଭାବ ଚାଲିଯାଏ । ହିନ୍ଦୁ ଏହା ବହୁକାଳୁ ଜାଣିଥିଲା; ତେଣୁ ଋଷିମାନେ ସେମାନଙ୍କର ତପସ୍ୟା ଓ ସାଧନା ନିମିତ୍ତ ହିମାଳୟକୁ ବାଛୁଥିଲେ ।